# ଈଶପ୍ କାହାଣୀ

[ ପ୍ରଥମ ଭାଗ ]

ଲେଖକ :

ଶ୍ରୀ ଜଗନ୍ନାଥ ରାଉତ

କମଳ ପ୍ରକାଶନ

ପ୍ରକାଶକ : କମଳ ପ୍ରକାଶନ, ବାଲୁବଜାର, କଟକ -୨

ମୁଦ୍ରକ : ସୁରୁଚି ପ୍ରିଣ୍ଟର୍ସ, ଖଟବିନ୍ ସାହି, କଟକ-୧

ପ୍ରଥମ ସଂସ୍କରଣ : ୧୯୯୬, ମୂଲ୍ୟ : ଟ. ୮/-

## ସୂଚୀପତ୍ର



—

# ବାଟୋଇ ଓ କୁରାଢ଼ି

ଦିନେ ଦୁଇଜଣ ଲୋକ ସାଙ୍ଗ ହୋଇ ଯାଉଥିଲେ। ସେମାନେ ଯାଉ ଯାଉ ରାସ୍ତା ଉପରେ ଗୋଟିଏ କୁରାଢ଼ି ପଡ଼ିଥିବାର ଦେଖିଲେ। ଦୁହିଁଙ୍କ ଭିତରୁ ଜଣେ ଦଉଡ଼ିଯାଇ ସେଇଟିକୁ ଉଠାଇ ନେଇ କହିଲା, "ଦେଖ, ଆଜି ମୋର ଭାଗ୍ୟ କେଡ଼େ ଭଲ? ଏଇ କୁରାଢ଼ିଟି ମୁଁ ପାଇଲି। ମୋ କୁରାଢ଼ିଟି ଦେଖିଲ, କେଡ଼େ ସୁନ୍ଦର ହେଇଚି!"

ଦ୍ୱିତୀୟ ବାଟୋଇଟି କହିଲା, "ତୁମର କୁରାଢ଼ି ବୋଲି କାହିଁକି କହୁଚ— ଆମର ବୋଲି କହ। ଦୁହେଁଯାକ ତ ଏହାକୁ ଦେଖିଥିଲେ।"

ପ୍ରଥମ ବାଟୋଇ କହିଲା, "ବାଃ, ଆମର କାହିଁକି ହେବ? ଏକା ମୋର। ମୁଁ ପାଇଛି। ତୁମର ସେଥିରେ ଭାଗ ନାହିଁ।"

ଦ୍ୱିତୀୟ ବାଟୋଇ କହିଲା, "ପ୍ରକୃତରେ ସେଇଟି ତୁମର ନୁହେଁ କି ମୋର ନୁହେଁ। ମୋତେ ଭାଗ ନ ଦେବ ତ ନାହିଁ— ତୁମ ଇଛା।"

ଦୁହେଁ ଯାକ କିଛି ଦୂର ଯିବା ପରେ ଜଣେ ଲୋକ ପଛରୁ ଦୌଡ଼ି ଦୌଡ଼ି ଆସି ସେମାନଙ୍କୁ ଅଟକାଇ କହିଲା, "ମୁଁ କୁରାଢ଼ିଟି ରାସ୍ତାରେ ରଖିଦେଇ ପରିସ୍ରା କରିବାକୁ ଯାଇଥିଲି। ମୁଁ ଆସୁ ଆସୁ ତୁମେ ଦୁହେଁ ତାକୁ ଘେନି ପଳାଇଯାଉଛ! ଚାଲ, ତୁମକୁ ଧରି ଥାନାକୁ ନେବି।"

ଏହା ଶୁଣି ପ୍ରଥମ ବାଟୋଇ କହିଲା, "ଆମ ଭାଗ୍ୟ ଖରାପ। ଥାନାକୁ ଗଲେ ଆମ କଥା ସରିଯିବ।"

ଦ୍ୱିତୀୟ ବାଟୋଇ କହିଲା, ''ଭାଇ, 'ଆମ ଭାଗ୍ୟ' ନ କହି 'ମୋ ଭାଗ୍ୟ' ବୋଲି କୁହ। ତୁମେ ଏବେ କହୁଥିଲ ଯେ କୁରାଢ଼ିଟି 'ତୁମେ' ପାଇଛ– ତେଣୁ ସେଇଟି 'ତୁମର'। ଏବେ ବିପଦ ପଡ଼ିଲାବେଳକୁ ମୋତେ ଭାଗୀ କରୁଛ କାହିଁକି? ତୁମେ ଥାନାକୁ ଯିବ; କୁରାଢ଼ି ନେବାର ଫଳ ଭୋଗିବ।''



ପ୍ରଥମ ବାଟୋଇର ଆଉ କିଛି କହିବାକୁ ବାଟ ନଥିଲା। ସେ କାନ୍ଦି କାନ୍ଦି କହିଲା, ''ଭାଇ, ମୋତେ କ୍ଷମା କର। ତୁମେ ସହାୟ ନହେଲେ ମୁଁ ଜେଲ୍ ଯିବି।'' ସାଙ୍ଗର ବିକଳ ଦେଖି ଅନ୍ୟ ବାଟୋଇର ମନରେ ଦୟା ଆସିଲା। ସେ କୁରାଢ଼ିର ମାଲିକକୁ କହିଲା, ''ଭାଇ, ତାକୁ ଥାନାକୁ ନେବାକୁ କହୁଛ କାହିଁକି? ସେ ତ ଚୋରି କରିନାହିଁ! ରାସ୍ତାରେ ପଡ଼ିଥିବାରୁ ନେଇଯାଇଥିଲା। ଥାନାକୁ ଗଲେ ସେ ହଇରାଣ ହେବ, ତୁମେ

ବି ହଇରାଣ ହେବ। ତେଣୁ ତୁମ କୁରାଢ଼ିଟି ନେଇ ତୁମେ ଘରକୁ ଚାଲିଯାଅ।''

କୁରାଢ଼ିଟି ନେଇ ଲୋକଟି ଚାଲିଗଲା। ତା'ପରେ ଦ୍ୱିତୀୟ ବାଟୋଇ ତା'ର ସାଥୀକୁ କହିଲା, ''ବନ୍ଧୁ ସହିତ କପଟ ଆଚରଣ କଲେ ଫଳ କଅଣ ହୁଏ ଦେଖିଲ? ସମ୍ପଦରେ ହେଉ ବା ବିପଦରେ ହେଉ, ସବୁଥିରେ ବନ୍ଧୁକୁ ଭାଗୀ କରିବା ଉଚିତ।''

''ସୁଖରେ ଭାଗୀ ନୁହେଁ ଯେହୁ
ଦୁଃଖେ କି ଭାଗୀ ହେବ ସେହୁ?''

## ଘୋଡ଼ା ଓ ବାରହା

ବଣ ଭିତରେ ଗୋଟିଏ ଘୋଡ଼ା ଓ ଗୋଟିଏ ବାରହା ପାଖାପାଖି ରହୁଥିଲେ। ସେମାନଙ୍କୁ ଏକା ପଡ଼ିଆରେ ଚରିବାକୁ ହେଉଥିଲା ଓ ଏକା ପୋଖରୀରୁ ପାଣି ପିଇବାକୁ ହେଉଥିଲା। ବାରହା ତା'ର ନାକ ଓ ଦାନ୍ତରେ ମାଟି ଖୋଳି ପଡ଼ିଆର ଘାସ ନଷ୍ଟ କରିଦେଉଥିଲା। ପୋଖରୀର ପଙ୍କରେ ଲୋଟି ପାଣିକୁ ମଇଳା କରିଦେଉଥିଲା। ତା'ର ଏଇ ଖରାପ ଗୁଣ ଯୋଗୁ ଘୋଡ଼ା ଅସୁବିଧାରେ ପଡୁଥିଲା। ସେ ତେଣୁ ବାରହାକୁ ଘୃଣା କରୁଥିଲା। ଏହା ଫଳରେ ପାଖାପାଖି ହୋଇ ରହୁଥିଲେ ସୁଦ୍ଧା ଦୁହିଁଙ୍କ ଭିତରେ କଥାବାର୍ତ୍ତା ସୁଦ୍ଧା ନଥିଲା। ଘୋଡ଼ା ଭାବିଲା, ''କୌଣସିମତେ ଏ ବାରହା ଏଠାରୁ ନଗଲେ ମୁଁ ଶାନ୍ତିରେ ରହିପାରିବିନାହିଁ।''

ଦିନେ ଜଣେ ଶିକାରୀ ବଣକୁ ଆସିଲା। ଘୋଡ଼ା ତା' ପାଖକୁ ଯାଇ କହିଲା, ''ତୁମେ ବଣଯାକ ବୁଲି ଶିକାର କରୁଛ।

ଗୋଟିଏ ବାର୍‌ହା ମୋ ସାଥିରେ ଶତ୍ରୁତା କରୁଛି । ତାକୁ ମାରିଦେଲେ ମୋର ବଡ଼ ଉପକାର ହେବ ।''



ଶିକାରୀ କହିଲା – ''ମୁଁ ତାକୁ ମାରିଦେବି; କିନ୍ତୁ ସେଥିରେ ତୁମର ସାହାଯ୍ୟ ଦରକାର ।''

ଘୋଡ଼ା କହିଲା, ''ତୁମେ ଯେଉଁଭଳି ସାହାଯ୍ୟ ଚାହିଁବ ମୁଁ ତାହା ଦେବି ।''

ଶିକାରୀ ଗୋଟେ ଲଗାମ୍ ଓ ଜିନ୍ ଆଣି ଘୋଡ଼ାକୁ କହିଲା, ''ମୁଁ ତୋ ଉପରେ ବସିଲେ ଯାଇ ବାର୍‌ହାକୁ ମାରିବା ସହଜ ହେବ । ତୋ ଦେହରେ ଏ ଲଗାମ ଓ ଜିନ୍‌କୁ ଲଗାଇ ମୁଁ ବସିବି । ତା'ପରେ ଶରମାରି ବାର୍‌ହାକୁ ଶିକାର କରିବି ।''

ବାରହା ଉପରେ ରାଗ ସାଧିବାକୁ ତ ଘୋଡ଼ା ଅତି ଆତୁର ଥିଲା – ତେଣୁ ସେ ଶିକାରୀର କଥାରେ ରାଜିହୋଇଗଲା । ଶିକାରୀ ଘୋଡ଼ା ମୁହଁରେ ଲଗାମ୍ ଦେଇ ଓ ପିଠିରେ ଜିନ୍ ପକାଇ ନିଶ୍ଚିନ୍ତ ହୋଇ ବସିଲା । ତାହା ପରେ ଶରମାରି ବାରହାକୁ ମାରିଲା । ବାରହା ମରିବାରୁ ଘୋଡ଼ା ଖୁବ୍ ଆନନ୍ଦିତ ହେଲା ।

ଶିକାରୀ ଦେଖିଲା ଯେ ଘୋଡ଼ା ଏବେ ତା’ ହାତମୁଠାରେ । ଶିକାର ସରିବା ପରେ ସେ ଓହ୍ଲାଇ ନଯାଇ ଲଗାମ୍ ଧରି ଘୋଡ଼ାକୁ ନିଜ ଘରକୁ ନେଲା ଓ ଖୁଣ୍ଟରେ ବାନ୍ଧିପକାଇଲା । ସେହିଦିନଠାରୁ ଶିକାରୀ ହେଲା ଘୋଡ଼ାର ପ୍ରଭୁ । ଶିକାରୀର ହୁକୁମ ମାନି, ତାକୁ ପିଠିରେ ବସାଇ ତା’ର ଇଚ୍ଛା ଅନୁସାରେ ତାକୁ ବୋହିବା ହେଲା ଘୋଡ଼ାର କାମ ।

ଘୋଡ଼ା ଏବେ ମନେ ମନେ ଭାବିଲା, ‘‘ହାୟ ! ମୁଁ କଅଣ କଲି ? ବାରହା ପାଖରେ ରହିବାର ଅସୁବିଧା ହେଲେ ବି ସ୍ୱାଧୀନ ଭାବରେ ଚଳିବା କେତେ ଭଲ ଥିଲା । ତାକୁ ମାରିବାକୁ ଯାଇ ମୁଁ କାଳକାଳକୁ ଦାସ ହୋଇ ରହିଲି ।’’

‘‘ଶତ୍ରୁର ପ୍ରତିଶୋଧ ପାଇଁ,
ପରର ଆଶ୍ରା ନିଅ ନାହିଁ ।’’

## ବାଦୁଡ଼ି ଦୁଇପଟୁ ତଡ଼ାଖାଇଲା

ଥରେ ବଣର ପଶୁ ଓ ପକ୍ଷୀମାନଙ୍କ ଭିତରେ ଏକ ବଡ଼ ଧରଣର ଲଢ଼େଇହେଲା । ପଶୁମାନେ କହିଲେ, ‘‘ଆମେ ବଣର ମାଲିକ ।’’ ପକ୍ଷୀମାନେ କହିଲେ, ‘‘ନା, ବଣ ଆମର ।’’ ପଶୁମାନଙ୍କ ପଟରୁ ବାଘ, ସିଂହ, ଭାଲୁ, ଚିତାବାଘ, ବିଲୁଆ, ହାତୀ ପ୍ରଭୃତି

ଆସିଲେ। ପକ୍ଷୀମାନଙ୍କ ପଟରୁ ଶାଗୁଣା, ଚିଲ, ବାଜ, କୁଆ ଆଦି ଆସିଲେ। ଦୁଇ ଦଳ ଭିତରେ ଅନେକ ଦିନ ଯାଏଁ ଲଢ଼େଇ ଚାଲିଲା, କିନ୍ତୁ କାହାରି ଜିଣା ହେଲାନାହିଁ। କେତେବେଳେ ପଶୁମାନେ ଜିଣିଲେ ତ କେତେବେଳେ ପକ୍ଷୀମାନେ ଜିଣନ୍ତି।

ବାଦୁଡ଼ି ପଶୁ ନୁହେଁ କି ପକ୍ଷୀ ନୁହେଁ। ପଶୁମାନେ ଜିଣିବାବେଳେ ସେ ସେମାନଙ୍କ ପକ୍ଷରେ ରହି କହୁଥିଲା, "ମୁଁ ପଶୁ, ଦେଖ, ମୋ ଦେହରେ ଲୋମ ଅଛି। ମୁଁ ପଶୁମାନଙ୍କ ପରି ଛୁଆ ଜନ୍ମ କରେ, ଡିମ୍ବ ଦିଏ ନାହିଁ।" ସେହିପରି ପକ୍ଷୀମାନେ ଜିଣିଲାବେଳେ ସେ ପକ୍ଷୀମାନଙ୍କୁ କହୁଥିଲା, "ମୁଁ ପକ୍ଷୀଟିଏ। ଦେଖ, ମୁଁ ତୁମରି ପରି ଉଡୁଛି। ପଶୁ ଆକାଶରେ ଉଡ଼ିବାର କେହି ଦେଖିଛ ?"

ଅନେକ ଦିନ ଧରି ଏ ଲଢ଼େଇ ଲାଗିଲା। ବହୁତ ପଶୁ ଓ ପକ୍ଷୀ ମଲେ। ଶେଷରେ ଦୁଇ ଦଳର ସନ୍ଧି ହେଲା। କଥା ହେଲା ଯେ ପଶୁପକ୍ଷୀ ମିଳିମିଶି ଚଳିବେ। କେହି କାହାରି କ୍ଷତି କରିବେ ନାହିଁ। ଏହି ସନ୍ଧି ଉତ୍ସବ ପାଳିବା ପାଇଁ ଏକ ଭୋଜି ହେଲା। ଗୋଟିଏ ପାଖରେ ପଶୁମାନେ ବସିଲେ – ଅନ୍ୟ ପାଖରେ ପକ୍ଷୀମାନେ।

ବାଦୁଡ଼ି ଭୋଜି ଖାଇବାକୁ ପଶୁମାନଙ୍କ ଧାଡ଼ିକୁ ଗଲା। ସେମାନେ କହିଲେ, "ତୁ ପଶୁ ନୁହଁ। ତୋର ବଡ଼ ବଡ଼ ଡେଣା ଅଛି; ତୁ ଆକାଶରେ ଉଡୁଛୁ। ପଶୁମାନେ ଉଡ଼ନ୍ତି ନାହିଁ। ତୁ ଆମ ପାଖରୁ ଚାଲିଯା।"

ବାଦୁଡ଼ି ଏହାପରେ ପକ୍ଷୀମାନଙ୍କ ପାଖକୁ ଗଲା। ସେମାନେ କହିଲେ – ତୁ ଆମ ପାଖରୁ ଚାଲିଯାଅ – "ତୁ ପକ୍ଷୀ ନୁହଁ। ପକ୍ଷୀ ହୋଇଥିଲେ ତୋର ଥଣ୍ଟ ଥାଆନ୍ତା, ପର ଥାଆନ୍ତା। ଏସବୁ ତୋର ନାହିଁ। ତା'ଛଡ଼ା କେଉଁ ପକ୍ଷୀର ମୂଷା କାନଭଳି

କାନ ଥାଏ ? ତୁ କ'ଣ ଆମ ଭଳି ଡିମ୍ବ ଦେଉ ? କେଉଁ ବିଚାରରେ ତୁ ନିଜକୁ ପକ୍ଷୀ ବୋଲି କହୁଚୁ ? ଆମେ ଏଡ଼େ ବୋକା ନୋହୁ ଯେ ତତେ ପକ୍ଷୀ ବୋଲି ଆମ ସାଥିରେ ବସାଇବୁ ।''



ଏହିପରି ଦୁଇ ପଟରୁ ତଡ଼ାଖାଇ ବାଦୁଡ଼ି ବିଚରା ଭୋଜିସଭାରୁ ପଳାଇଗଲା । ସେ ପଶୁଙ୍କୁ ମୁହଁ ଦେଖାଇ ପାରିଲା ନାହିଁ କି ପକ୍ଷୀଙ୍କୁ ବି ମୁହଁ ଦେଖାଇ ପାରିଲା ନାହିଁ। ପାହାଡ଼ର ଗୋଟାଏ ଅନ୍ଧାରୁଆ ଗୁହାରେ ଲୁଚି ରହିଲା । ସେହିଦିନଠାରୁ ବାଦୁଡ଼ି ଆଉ ଦିନବେଳା ବାହାରେ ନାହିଁ। ଅନ୍ଧାର ରାତିରେ ଲୁଚି ଲୁଚି ଆହାର ଖୋଜି ବୁଲେ। ଦିନବେଳା ଅନ୍ଧାରୁଆ ଜାଗା ଦେଖି ଲୁଚିରହେ ।

''ଯାହାର ନୀତି ନୋହେ ସ୍ଥିର,<br>
ତାହାକୁ ବିଶ୍ୱାସ ନକର ।''

# ପର ଜିନିଷକୁ ଲୋଭ କରନାହିଁ

ଗୋଟିଏ କୁକୁର ଭୋକିଲା ହୋଇ ଆହାର ଖୋଜୁଥିଲା। ସେ ଦେଖିଲା, ଜଣକର ରନ୍ଧାଘର କବାଟ ଖୋଲା ଅଛି। ପାଖରେ କେହି ନାହାନ୍ତି। ସେ ହଠାତ୍ ଘର ଭିତରେ ପଶିଗଲା। ପୂଝାରୀ ରାନ୍ଧିବାପାଇଁ ଖଣ୍ଡିଏ ମାଂସ ରଖିଥିଲା। କୁକୁର ସେ ଖଣ୍ଡିକ କାମୁଡ଼ି ଧରି ପଳାଇ ଆସିଲା। କାଳେ ଘରର ଲୋକେ ତାକୁ ଦେଖିବେ, ଏହି ଭୟରେ ସେ ଦୂରକୁ ଯାଇ ମାଂସ ଖଣ୍ଡିକ ଖାଇବ ବୋଲି ଭାବିଲା।

ସେ ଯାଇ ଗୋଟିଏ ନଈକୂଳରେ ପହଞ୍ଚିଲା। ନଈ ଆରପାରିରେ ଗୋଟିଏ ଛୋଟ ବୁଦା। ସେ ଭାବିଲା, ସେହି ବୁଦା ଭିତରେ ବସି ନିଶ୍ଚିନ୍ତ ମନରେ ମାଂସ ଖଣ୍ଡିକ ଖାଇବ।

ନଈରେ ଅଳ୍ପ ପାଣି ଥିଲା। ସେ ନଈ ପାରହେବାକୁ ପାଣି ଧାରକୁ ଗଲା। ପାଣି ଭିତରେ ନିଜର ଛାଇକୁ ଦେଖି ସେ ଭାବିଲା, ପାଣି ଭିତରେ ଆଉ ଗୋଟାଏ କୁକୁର ଖଣ୍ଡେ ମାଂସ ଧରି ଯାଉଛି। ତାହାଠାରୁ ସେ ଖଣ୍ଡକ ଛଡ଼େଇ ଆଣିଲେ ମୁଁ ଦୁଇଖଣ୍ଡଯାକ ଖାଇବି।

ମନ ଭିତରେ ଏହିପରି ବିଚାରି ସେ ଅନ୍ୟ କୁକୁରକୁ ଆକ୍ରମଣ କରିବାପାଇଁ ଭୋ ଭୋ କରି ରାବିଉଠିଲା। ତାର ପାଟି ଖୋଲିଯିବାରୁ ତା' ପାଟିର ମାଂସ ଖଣ୍ଡିକ ପାଣିରେ ପଡ଼ି ଭାସିଗଲା। ଆଉ ଖଣ୍ଡିଏ ମାଂସ ପାଇବା ତ ଦୂରର କଥା, ନିଜ ପାଟିରେ ଯେଉଁ ଖଣ୍ଡିକ ଥିଲା ତାହା ମଧ୍ୟ ଗଲା। ସେ ମନ ଦୁଃଖରେ କହିଲା,

"ହାୟ ! ମୁଁ କେଡ଼େ ମୂର୍ଖ ! ପରର ଜିନିଷକୁ ଲୋଭ କରି ଆପଣାର ଜିନିଷକୁ ମଧ ହରାଇଲି ।"



ତେଣୁ ନୀତିବାଣୀ ଅଛି ଯେ—

"ପରଧନକୁ କଲେ ଆଶ, ନିଜର ଘଟେ ସର୍ବନାଶ ।"

## ଗଧିଆ ଓ ମେଣ୍ଢାଛୁଆ

ପାହାଡ଼ ତଳେ ଗୋଟିଏ ଝରଣା ବୋହିଯାଉଥାଏ । ଏହାର ଜଳ ପରିଷ୍କାର ଓ ମଧୁର । ଗୋଟିଏ ମେଣ୍ଢାଛୁଆକୁ ଶୋଷ ହେବାରୁ ସେ ଏହି ଝରଣା କୂଳରେ ଛିଡ଼ାହୋଇ ପାଣି ପିଇ ଲାଗିଲା । ଏହି ସମୟରେ ଗୋଟିଏ ଗଧିଆ ତାହାକୁ ଦେଖି

ଖାଇବାକୁ ମନ କଲା । ସେ ରାଗିଯାଇ ମେଣ୍ଢାଛୁଆକୁ କହିଲା, "କିରେ, ତୋର ସାହସ ତ କମ୍ ନୁହେଁ? ମୁଁ ଯେଉଁ ପାଣି ପିଉଛି, ତୁ ତାକୁ ଗୋଳିଆ କରୁଛୁ କାହିଁକି ?"

ମେଣ୍ଢାଛୁଆ କହିଲା, "ହଜୁର, ଆପଣ ଅଛନ୍ତି ଉପରେ, ମୁଁ ଅଛି ତଳେ । ପାଣି ଆପଣଙ୍କ ଆଡୁ ମୋ ଆଡ଼କୁ ବୋହି ଆସୁଛି । ମୁଁ ଆପଣଙ୍କ ପିଇବା ପାଣିକୁ ଗୋଳିଆ କଲି କିପରି ?"

ଗଧିଆ କହିଲା, "ପାଣି କୁଆଡୁ କୁଆଡ଼କୁ ବୋହୁଛି ସେଥିରେ କଅଣ ଅଛି ? ତୁ ଭାରି ଦୁଷ୍ଟ । ଗଲାବର୍ଷ ତୁ ମୋତେ ଗାଳିଦେଇଥିଲୁ ।"

ମେଣ୍ଢାଛୁଆ ଡରି ଡରି କହିଲା, "ହଜୁର୍, ଏ ତ ଅସମ୍ଭବ କଥା । ମୁଁ ଗଲା ବର୍ଷ ଗାଳି ଦେଲି କିପରି ? ମୋଟେ ତିନିମାସ ହେଲା ତ ମୁଁ ଜନ୍ମ ହେଇଚି ।"

ଗଧିଆ ଏଥର ଗର୍ଜନ କରି କହିଲା, "ବର୍ଷକ ଆଗେ ତୁ ଜନ୍ମ ହୋଇନଥିଲେ ତୋ ମାଆ ମୋତେ ଗାଳିଦେଇଥିବ । ତୁ ଗାଳି ଦେଇଥିଲେ ଯାହା, ତୋ ମାଆ ଗାଳି ଦେଇଥିଲେ ବି ସେଇଆ । ତୋତେ ମୁଁ ଖାଇବି ।" ଏହା କହି ଦୁଷ୍ଟ ଗଧିଆ ମେଣ୍ଢାଛୁଆକୁ ମାରି ଖାଇଲା ।

"ଦୁର୍ଜନ ନ ଶୁଣେ ନ୍ୟାୟ କଥା,
ନିରୀହକୁ ସଦା ଦିଏ ବ୍ୟଥା ।"

# କୃପଣର ଧନ

ଗୋଟିଏ ସହରରେ ଜଣେ ଧନୀ ଲୋକ ଥିଲା। ତାର ଏତେ ଧନ ଥିଲେ ହେଁ ସେ କୃପଣ ଥିବାରୁ ନିଜ ଖାଇବା ପିଇବାରେ ସୁଦ୍ଧା ପଇସା ଖରଚ୍ କରୁନଥିଲା। ଗରିବ ଭିକାରୀଙ୍କୁ ମୁଠାଏ ଚାଉଳ ଦେବାକୁ ସେ କୁଣ୍ଠିତ ଥିଲା। ତେଣୁ କେହି ତା' ଦୁଆରକୁ ଯାଉନଥିଲେ। ଲୋକେ ତା'ର ନାଁ ଧରୁନଥିଲେ। ସେ ଖାଲି ଧନ ସଞ୍ଚିବାରେ ଲାଗିଥାଏ।

ଶେଷରେ ସେ ତା'ର ସବୁ ଟଙ୍କା ପଇସା ବଦଳରେ ସୁନା କିଣି ଗୋଟିଏ ସୁନାର ମୁଣ୍ଡା କଲା। ଗୋଟିଏ କୋଠରିରେ ଗାତଟିଏ ଖୋଳି ସେଥିରେ ସୁନା ମୁଣ୍ଡାଟି ପୋତିଲା। ସେହିଦିନଠାରୁ ସେ ପ୍ରତିଦିନ ରାତି ଅଧରେ ଦୀପ ଜାଳି ସେ କୋଠରିକୁ ଯାଏ ଓ ଗାତରୁ ସୁନାମୁଣ୍ଡାଟି ବାହାରକରି କିଛିବେଳ ଯାଏଁ ହାତରେ ଧରି ଦେଖେ, ପୁଣି ପୋତିଦେଇ ଶୋଇବାକୁ ଯାଏ। ସୁନାର ମୁଣ୍ଡାଟିକୁ ହାତରେ ଧରି ଦେଖିଲାବେଳେ ଆନନ୍ଦରେ ତା'ର ଛାତି ଫୁଲିଯାଏ।

ଏହି ଧନୀଲୋକର ଘର ପାଖରେ ଜଣେ ଗରିବ ଚାଷୀ ତା'ର କୁଡ଼ିଆରେ ରହୁଥିଲା। ସେ ଦେଖିଲା, ଧନୀ ଲୋକଟି ପ୍ରତିଦିନ ରାତି ଅଧରେ ଦୀପ ନେଇ ଗୋଟିଏ କୋଠରିରେ କିଛି ସମୟ ରହୁଛି ଓ ତା'ପରେ ଶୋଉଛି। ଦିନେ ସେ ଲୁଚିରହି ଦୂରରୁ ଧନୀ ଲୋକର କାମ ଦେଖିଲା। ଲୋକଟି ଦୀପ ଥୋଇ ଶାବଳରେ ଗୋଟିଏ ଥାନ ଖୋଳିଲା ଓ ସେଥିରୁ କ'ଣ ଗୋଟିଏ

ଜିନିଷ ବାହାର କଲା । କିଛି ବେଳଯାଏ ତାକୁ ଧରି ଏପାଖ ସେପାଖ କରି ଦେଖିଲା । ପୁଣି ତାହାକୁ ସେହିଠାରେ ପୋତିଦେଇ ଶୋଇବାକୁ ଗଲା ।

ଏହା ଦେଖି ଚାଷୀ ଅନୁମାନ କଲା ଯେ ଧନୀଲୋକଟି ଗାତରେ ନିଶ୍ଚୟ କିଛି ମୂଲ୍ୟବାନ୍ ଜିନିଷ ରଖିଛି । ତା' ନୋହିଲେ ଏତେ ରାତିରେ ତାକୁ ଖୋଳି ଦେଖୁଥାନ୍ତା କାହିଁକି ? ଦିନେ ରାତିରେ ଧନୀଲୋକଟି ଶୋଇବାକୁ ଯିବା ପରେ ଚାଷୀଟି କୌଣସିମତେ ସେହି କୋଠରିରେ ପଶିଲା । ଗାତ ଖୋଳି ସୁନାମୁଣ୍ଡାଟିକୁ ଚୋରାଇ ନେଇ ଆସିଲା ଓ ସେ ଗାତରେ ଗୋଟିଏ ଭଙ୍ଗା ଇଟା ପୋତିଦେଲା ।

ପରଦିନ ରାତିରେ ଧନୀ ଲୋକଟି ଗାତ ଖୋଳି ଦେଖିଲା ଯେ କେହି ତାର ସୁନାମୁଣ୍ଡାଟି ଚୋରାଇନେଇ ସେଠାରେ ଖଣ୍ଡେ ଇଟା ପୋତି ଦେଇଛି । ସେ ଦୁଃଖରେ କାନ୍ଦି କାନ୍ଦି ମୁଣ୍ଡ ପିଟିହେଲା ।

ତା'ର କାନ୍ଦ ଶୁଣି ପଡ଼ିଶାମାନେ ଏହାର କାରଣ ପଚାରିଲେ । ତା'ର ସୁନାମୁଣ୍ଡାଟି ଚୋରିହୋଇଥିବା କଥା ଶୁଣି ସେମାନେ କହିଲେ, ''ଏଥିରେ ତୁମେ ଦୁଃଖ କରୁଛ କାହିଁକି ? ତୁମେ ପ୍ରତିଦିନ ରାତିରେ ଗାତ ଖୋଳି ଥରେ ସୁନାମୁଣ୍ଡାଟିକୁ ଦେଖୁଥିଲ । ସେଥିରେ ତୁମର ସନ୍ତୋଷ ହେଉଥିଲା; କିନ୍ତୁ ସେଥିରେ ଦୁନିଆରେ କାହାରି କିଛି ଉପକାର ହେଉନଥିଲା । ତୁମେ ଏଣିକି ପ୍ରତିଦିନ ସେହିପରି ଗାତ ଖୋଳି ଇଟା ଖଣ୍ଡିକୁ ଦେଖି ମନେକରିବ ଯେ ସେଇଟି ତୁମର ସୁନାମୁଣ୍ଡା – କାନ୍ଦୁଛ କାହିଁକି ?''

''ନ କଲେ ଭୋଗ ଅବା ଦାନ,
ଧନର ନାହିଁ ପ୍ରୟୋଜନ ।''

# କପଟୀର କଥା ଶୁଣ ନାହିଁ

ଏକ ବଣରେ ଗୋଟିଏ ସିଂହ ଥିଲା । ସିଂହ ପଶୁଙ୍କର ରାଜା ହୋଇଥିବାରୁ ସବୁ ପଶୁ ତାକୁ ଡରି ଚଳୁଥିଲେ । ଏହି ସିଂହ ବୁଢ଼ା ହୋଇଗଲା । ତା'ର ଦେହର ବଳ ହଟିଗଲା । ସେ ଆଉ ବଣ ଭିତରେ ଦୌଡ଼ାଦୌଡ଼ି କରି ପଶୁ ମାରି ପାରିଲା ନାହିଁ । ଖାଇବା ବିନା ସେ ଦିନକୁଦିନ ଆହୁରି ଅଧିକ ଦୁର୍ବଳ ହୋଇଗଲା । ସେ ଭାବିଲା, "ଏଭଳି ନଖାଇ ନପିଇ ଆଉ କେତେଦିନ ବଞ୍ଚିବି ? ଏବେ ଦେହରେ ବଳନାହିଁ ଯେ ବଣରେ ବୁଲି ଶିକାର କରିବି । କୌଶଳ କରି ଆହାର ଯୋଗାଡ଼ ନକଲେ ଚଳିବନାହିଁ ।"

ଏହା ବିଚାରି ସିଂହ ଆପଣା ଗୁହା ଭିତରେ ପଡ଼ିରହି ପଶୁମାନଙ୍କୁ ଜଣାଇଦେଲା ଯେ ସେ ରୋଗରେ ପଡ଼ିଛି— ଉଠିପାରୁନାହିଁ । ସେ ବାହାରକୁ ଯିବାଆସିବା ବନ୍ଦ କରିଦେଲା । ପଶୁରାଜ ବେମାରି ପଡ଼ିଛନ୍ତି— ଗୁହାରୁ ଆଉ ବାହାରୁନାହାନ୍ତି ଶୁଣି ଅନ୍ୟ ପଶୁମାନେ ତାଙ୍କୁ ଦେଖିବାକୁ ଆସିଲେ । ସିଂହ ଜଣାଇଦେଲା ଯେ ସେମାନେ ଥରକେ ଜଣକରୁ ବେଶି ଆସିବେ ନାହିଁ । ବେଶି ଜୀବ ଆସି ଗୋଳମାଳ କଲେ ତା'ର ରୋଗ ବଢ଼ିବ ।

ଯେଉଁଦିନ ଯେଉଁ ପଶୁଟି ସିଂହର କୁଶଳ ପଚାରିବାକୁ ଗୁହା ଭିତରକୁ ଯାଉଥିଲା, ସେଦିନ ସିଂହ ତାକୁ ମାରି ଖାଉଥିଲା । ଏହା ଫଳରେ ଅଳ୍ପଦିନ ଭିତରେ ସିଂହର ବଳ ଫେରିଆସିଲା । ଏ କୌଶଳ ଯୋଗୁ ଆହାର ଖୋଜିବାପାଇଁ ତାକୁ କିଛି ହେଲେ ପରିଶ୍ରମ କରିବାକୁ ପଡ଼ିଲା ନାହିଁ ।

ଏ ଘଟଣା ଦେଖି ଗୋଟିଏ ବିଲୁଆର ମନରେ ସନ୍ଦେହ ହେଲା । ସେ ଭାବିଲା – ସିଂହ ଗୋଟାଏ ଚାଲାକି କରି ରୋଗରେ ପଡ଼ିଛି ବୋଲି ମିଛରେ ପ୍ରଚାର କରୁଛି । ଯେଉଁମାନେ ତାକୁ ଦେଖିବାକୁ ଗୁହା ଭିତରକୁ ଯାଉଛନ୍ତି, ସେମାନେ କେହି ବାହାରି ଆସିବାର ଦେଖାଯାଉନାହିଁ କାହିଁକି ?

ଏଭଳି ବିଚାରି ଦିନେ ବିଲୁଆ ସିଂହର ଗୁହା ପାଖରେ ପହଞ୍ଚି କହିଲା, "ମହାରାଜ, ଅନେକ ଦିନ ହେଲା ଆପଣଙ୍କର ଦେଖା ମିଳୁନାହିଁ । ଆପଣଙ୍କର ଦେହ ଭଲ ଅଛି ତ ?"



ସିଂହ କୁନ୍ଥେଇ କୁନ୍ଥେଇ କହିଲା, "କିଏ ବିଲୁଆ କିରେ ? ମୁଁ ଶକ୍ତ ବେମାର ପଡ଼ିଛି ଯେ ବାହାରକୁ ଯାଇପାରୁନାହିଁ । ଯାହା ହେଉ, ଏତେଦିନେ ତୁ ମୋ ଖବର ନେବାକୁ ଆସିଲୁ । ବାହାରେ ଏମିତି ଛିଡ଼ା ହୋଇ ରହିଲୁ କାହିଁକି – ଭିତରକୁ ଆ । ପାଖରେ

ବସିଲେ ଟିକିଏ କଥାବାର୍ତ୍ତା ହେବା। ତତେ ଦେଖିଲେ ମୋର ମନ ଆନନ୍ଦ ହେବ। ମୋର ଶେଷ ସମୟ ହେଲାଣି; ଆଉ ଦିନେ ଦୁଇଦିନ। ମଲା ଆଗରୁ ତତେ ଥରେ ଭଲକରି ଦେଖିଥାଏ।''

ବିଲୁଆ ସିଂହର ଚାଲାକି ବୁଝିପାରି କହିଲା, ''ମହାରାଜ, ମୋତେ କ୍ଷମାକରନ୍ତୁ, ମୁଁ ଭିତରକୁ ଯାଇପାରିବି ନାହିଁ। ମୁଁ ଦେଖୁଛି ଯେଉଁମାନେ ଭିତରକୁ ଯାଇଛନ୍ତି, ସେମାନଙ୍କ ଯିବାର ପାଦଚିହ୍ନ ପଡ଼ିଛି, କିନ୍ତୁ କାହାରି ଫେରିଆସିବାର ପାଦଚିହ୍ନ ନାହିଁ। ତେଣୁ ମୁଁ ଗୁହା ଭିତରକୁ ଗଲେ ଆଉ ବାହାରିବାର ଆଶା ନାହିଁ। ମୁଁ ଏହିଠାରୁ ଆପଣଙ୍କୁ ପ୍ରଣାମ ଜଣାଇ ବିଦାୟ ନେଉଛି।'' ଏହା କହି ବିଲୁଆ ସେଠାରୁ ଦୌଡ଼ି ଚାଲିଗଲା।

''କପଟୀ କପଟ ବଚନ, ଶୁଣି ନ ଭୁଲ କଦାଚନ।''

## ମିଛ ଲୁଚି ରହେ ନାହିଁ

ଥରେ ଗୋଟିଏ ଗଧିଆ ଆହାର ଖୋଜି ବୁଲୁ ବୁଲୁ ଗୋଟିଏ ମେଣ୍ଢାଚମ ପାଇଲା। ତାହା ଦେଖି ସେ ମନେ ମନେ ଭାବିଲା, ''ଚାରିଆଡ଼େ ବୁଲି ବୁଲି ଆହାର ଖୋଜିବା ବଡ଼ କଷ୍ଟ କାମ। ଏ ଚମଡ଼ାଟିକୁ ଘୋଡ଼ିହୋଇ ମେଣ୍ଢାପଲରେ ପଶିଲେ ମୋତେ ଗଧିଆ ବୋଲି କେହି ଜାଣିପାରିବେ ନାହିଁ। ତେଣିକି ମୁଁ ସହଜରେ ମେଣ୍ଢାପଲ ଭିତରୁ ମେଣ୍ଢା ମାରି ଖାଇବି।''

ଏହି ଉପାୟ ପାଇଁ ସେ ନିଜ ଦେହକୁ ସେହି ମେଣ୍ଢା ଚମଡ଼ାରେ ଘୋଡ଼ାଇ ମେଣ୍ଢାପଲରେ ପଶିଗଲା। ମେଣ୍ଢା ଜଗାଳି ସେ କଥା ଜାଣିପାରିଲା ନାହିଁ। ଜଗାଳି ନ ଥିଲାବେଳେ ଗଧିଆ ଗୋଟାଏ ଦୁଇଟା ମେଣ୍ଢା ମାରି ଖାଇଯାଏ।



ଏହିପରି କେତେଦିନ ଗଲା । ମେଣ୍ଢାମାନଙ୍କ ସଂଖ୍ୟା ଦିନକୁ ଦିନ କମିବାର ଦେଖି ଜଗାଳିର ମନରେ ସନ୍ଦେହ ହେଲା । ସେ ପଲ ଭିତରେ ପଶି ମେଣ୍ଢାମାନଙ୍କୁ ଗଣିବାବେଳକୁ ଗଧିଆକୁ ଦେଖିଲା । ସେ ତାକୁ ଠେଙ୍ଗାରେ ପିଟି ପିଟି ମାରିଦେଲା ।

"ମିଛ ନ ଲୁଚେ ବେଶିଦିନ,
ପାପର ଦଣ୍ଡ ଅଛି ଜାଣ ।"

## ଅତି ଲୋଭରୁ ମୂଳ ବୁଡ଼େ

ଜଣେ କୃଷକ ଗୋଟିଏ ହଂସୀ ପାଳିଥିଲା । ତା'ର ଦେହଟି ବରଫ ପରି ଧଳା ଓ ତୁଳାପରି କୋମଳ । କୃଷକଟି ସେ ଭଳି

ସୁନ୍ଦର ହଂସୀ ଆଉ କେଉଁଠାରେ ଦେଖିନଥିଲା । କିନ୍ତୁ ଅନେକ ଦିନ ଗଲେ ସୁଦ୍ଧା ହଂସୀ ଡିମ୍ବ ଦେଲା ନାହିଁ । କୃଷକ ମନରେ ଦୁଃଖ ହେଲା । ଯେଉଁ ହଂସୀ ଡିମ୍ବ ନଦିଏ ତାକୁ ପାଳିବାରେ କି ଲାଭ ?

ଦୈବାତ୍ ଦିନେ ସକାଳେ କୃଷକ ହଂସୀକୁ ଚରାଇବାପାଇଁ ବସାରୁ ବାହାର କରିବାକୁ ଗଲାବେଳକୁ ଦେଖିଲା ଯେ ବସାରେ ଗୋଟିଏ ଡିମ୍ବ ରହିଛି । ତାର ମନରେ ଆନନ୍ଦ ହେଲା । ସେ ଡିମ୍ବଟିକୁ ଧରି ପରୀକ୍ଷା କରି ଆଶ୍ଚର୍ଯ୍ୟ ହୋଇଗଲା । ଏହାର ରଙ୍ଗ ସୁନାପରି ଓ ଓଜନ ଖୁବ୍ ବେଶି । ଏ ଯେ ସୁନାର ଡିମ୍ବ ସେଥିରେ ତା'ର ସନ୍ଦେହ ରହିଲା ନାହିଁ । ସେ ଡିମ୍ବଟିକୁ ନେଇ ଲୁଚାଇ ରଖିଦେଲା ।

ହଂସୀ ଏଣିକି ପ୍ରତିଦିନ ଗୋଟିଏ ଲେଖାଏଁ ସୁନାର ଡିମ୍ବ ଦେବାକୁ ଲାଗିଲା । କୃଷକ ସକାଳୁ ଉଠି ସେଇଟିକୁ ନେଇ ସାଇତି ରଖିଦିଏ । କିଛିଦିନ ଭିତରେ ସେ ଗୁଡ଼ିଏ ସୁନାଡିମ୍ବ ଜମାକରି ରଖିଲା ।

ଦିନେ କୃଷକ ମନରେ ଗୋଟିଏ ମନ୍ଦବୁଦ୍ଧି ପଶିଲା । ସେ ଭାବିଲା, "ପ୍ରତିଦିନ ଗୋଟିଏ ଲେଖାଏଁ ଡିମ୍ବ ନେଇ ଏତେ ହଇରାଣ ହେବି କାହିଁକି ? ଏହାର ପେଟରେ ଯେତେ ଡିମ୍ବ ଅଛି ଏକାଥରକେ ସବୁଯାକ ନେଇଗଲେ ସୁବିଧା ହେବ ।"

ଏହା ଭାବି ସେ ଗୋଟେ ଛୁରିରେ ହଂସୀର ପେଟକୁ ଦୁଇଫାଳ କରି ଚିରିଦେଲା । ସଙ୍ଗେ ସଙ୍ଗେ ହଂସୀଟି ମରିଗଲା । କୃଷକ ତା'ର ପେଟରେ ହାତ ପୂରାଇ ଖୋଜିଲା, କିନ୍ତୁ ଗୋଟିଏ ହେଲେ ଡିମ୍ବ ପାଇଲା ନାହିଁ । ସେ କାନ୍ଦି କାନ୍ଦି କହିଲା, "ହାୟ ! ମୁଁ କି ଦୁର୍ବୁଦ୍ଧି ନକଲି ! ଏକାବେଳକେ ସବୁ ଡିମ୍ବ ପାଇବି ବୋଲି ମନ କରି ପ୍ରତିଦିନ ଯେଉଁ ଗୋଟିକ ପାଉଥିଲି ତାକୁ ମଧ୍ୟ ହରାଇଲି ।"

"ଲୋଭରୁ ପାପର ଜନମ,
ପାପ ହିଁ ବିନାଶ କାରଣ ।"

# ଅସମାନ ପ୍ରାଣୀଙ୍କ ବନ୍ଧୁତାରୁ ବିପଦ

ଗୋଟିଏ ପୋଖରୀରେ ବେଙ୍ଗଟିଏ ଥିଲା । ସେହି ପୋଖରୀ କୂଳରେ ଗାତ ଭିତରେ ମୂଷାଟିଏ ରହୁଥିଲା । ଦିନେ ସେ ଦୁହିଁଙ୍କର ଭେଟ ହେଲା । କିଛିବେଳଯାଏଁ କଥାବାର୍ତ୍ତା ହେଲା ପରେ ଦୁହେଁ ବନ୍ଧୁ ହୋଇଗଲେ ।

ମୂଷା କହିଲା, "ତୁମେ ସବୁବେଳେ ଏଇ ପୋଖରୀରେ ନ ହେଲେ ଏହାର କୂଳରେ ରହୁଚ । ଚାଲ ବିଦେଶ ବୁଲିଯିବା । ନାନା ଥାନ ନାନା ଜିନିଷ ଦେଖିବା ।"

ବେଙ୍ଗ ଏ କଥାରେ ରାଜିହୋଇ କହିଲା, "ହଁ, ଯିବା । କିନ୍ତୁ ଆମେ ବାହାରିବା ଆଗରୁ ଗୋଟିଏ ଦଉଡ଼ିର ଏକ ମୁଣ୍ଡରେ ତୁମ ଅଣ୍ଟାକୁ ବାନ୍ଧିବା, ଆର ମୁଣ୍ଡଟି ମୋ ଅଣ୍ଟାରେ ବାନ୍ଧିଦେବା । ତାହାହେଲେ ଦୁହେଁଯାକ ସବୁବେଳେ ପାଖେ ପାଖେ ରହିଥିବା । ବିପଦ ପଡ଼ିଲେ ଜଣେ ଆରଜଣକୁ ସାହାଯ୍ୟ କରିପାରିବ ।"

ମୂଷା ଏ କଥାରେ ଆନନ୍ଦରେ ରାଜିହେଲା । ବେଙ୍ଗ ଗୋଟିଏ ଦଉଡ଼ି ଆଣିଲା । ତାହାର ଗୋଟିଏ ଗୋଟିଏ ମୁଣ୍ଡକୁ ଦୁହେଁ ଆପଣା ଆପଣା ଅଣ୍ଟାରେ ବାନ୍ଧିଦେଲେ ।

ଏଥର ବେଙ୍ଗ ଡେଇଁ ଡେଇଁ ଚାଲିଲା । ମୂଷା ତା' ପଛେ ପଛେ ଦଉଡ଼ିଲା । ଏହିପରି କିଛି ଦୂର ଯିବାପରେ ଗୋଟିଏ ଛୋଟ ନଇ ପଡ଼ିଲା । ନଇ ଦେଖି ମୂଷାର ଭୟ ହେଲା । ସେ

କହିଲା, "ମିତ, ମୋତେ ଡର ମାଡୁଛି; ଏ ନଈ କିପରି ପାର ହେବା ?"

ବେଙ୍ଗ କହିଲା, "ଭୟର କିଛି କାରଣ ନାହିଁ। ମୁଁ ଆଗେ ଆଗେ ପହଁରିଯିବି। ତୁମେ ମୋ ପଛେ ପଛେ ପହଁରି ଆସିବ। ତୁମେ ପହଁରିନପାରିଲେ ମୋ ପିଠିରେ ବସିଯିବ। ଭୟ କଅଣ ?"



[ ଚିଲ ବେଙ୍ଗ ଓ ମୂଷା ଦୁହିଁଙ୍କୁ ଝାମ୍ପିନେଲା । ]

ବେଙ୍ଗ ପାଣିରେ ପହଁରି ମୂଷାକୁ ଟାଣିଲା । ମୂଷା କିଛିଦୂର ପହଁରିଲା । ଏହି ସମୟରେ ବେଙ୍ଗ ପାଣିରେ ଟିକିଏ ବୁଡ଼ିବାକୁ ମନକଲା । ସେ ପାଣି ଭିତରେ ବୁଡ଼ିବାରୁ ମୂଷା ମଧ୍ୟ ବୁଡ଼ିଲା । ମୂଷା ଡାକପକାଇଲା, "ମିତ, ଦୟାକରି ତୁମେ ପାଣି ଉପରକୁ ଉଠିଆସ, ନୋହିଲେ ମୁଁ ମଲି ବୋଲି ଜାଣ ।"

ବେଙ୍ଗ ତା' ମଉଜରେ ପାଣିର ଭିତରକୁ ଭିତରକୁ ଯାଉଥିଲା – ସେ ମୂଷାର ଡାକ ଶୁଣନ୍ତା କାହିଁକି ? ଏଣେ ମୂଷା ଅଣନିଶ୍ୱାସୀ ହୋଇ ଛଟପଟ ହେଲା । ଏହି ସମୟରେ ଗୋଟିଏ ଚିଲ ଆକାଶରେ ଉଡୁଥିବାବେଳେ ମୂଷାଟିଏ ଛଟପଟ ହେଉଥିବାର ଦେଖିଲା । ସେ ଏକ ଝାମ୍ପ ମାରି ମୂଷାକୁ ତା' ନଖରେ ଧରି ଉଡ଼ିଗଲା । ବେଙ୍ଗ ମୂଷା ସହିତ ବନ୍ଧାହୋଇଥିବାରୁ ସେ ମଧ୍ୟ ଯାଇ ଚିଲ ହାବୁଡ଼ରେ ପଡ଼ିଲା । ଚିଲ ଗଛ ଉପରେ ବସି ମୂଷା ଓ ବେଙ୍ଗ ଦୁହିଁଙ୍କୁ ମାରି ଖାଇଲା ।

"ସମାନ ଜାତି, ରୂପ ଗୁଣ
ମଇତ୍ର ପଣର ଲକ୍ଷଣ ।
ବିଷମେ ବନ୍ଧୁପଣ କଲେ,
ପ୍ରମାଦ ପଡ଼ିଥାଏ ହେଲେ ।"

## ଦୁଷ୍ଟ ଜୀବର ଉପକାର କରିବ ନାହିଁ

ଖୁବ୍ ଶୀତଦିନ । ବରଫ ପଡୁଥାଏ । ସେଇଥିରେ ଜଣେ ଚାଷୀ କାମ କରିବାକୁ ବିଲକୁ ଗଲା । ବିଲରେ ପହଞ୍ଚି ସେ ଦେଖିଲା ହିଡ଼ ଉପରେ ଗୋଟିଏ ସାପ ପଡ଼ିଛି । ତା' ଦେହରେ ଜୀବନ ଅଛି; ମାତ୍ର ଥଣ୍ଡା ଯୋଗୁଁ ମଲାପରି ହୋଇଯାଇଛି ।

ସାପର ଏ ଅବସ୍ଥା ଦେଖି ଚାଷୀ ମନରେ ଦୟା ହେଲା । ସେ ତାକୁ ଟେକି ନେଇ ତା' ଦେହରୁ ବରଫ ଝାଡ଼ିଦେଲା ଓ ଉଷୁମ କରିବା ପାଇଁ ନିଜ ଜାମା ତଳେ ଛାତିକି ଲଗାଇ ରଖିଲା । କିଛି ସମୟ ପରେ ସାପର ଦେହ ଉଷୁମ ହୋଇଗଲା । ତା'ର ବଳ ଫେରିଆସିଲା ।

ସାପର ତ ପ୍ରକୃତି ଖରାପ — ସେ କି ଚାଷୀର ଉପକାର ମାନନ୍ତା ? ଦେହରେ ବଳ ଆସିଲା କ୍ଷଣି ସେ ଚାଷୀର ଛାତିରେ ଚୋଟ ଉପରେ ଚୋଟ ମାରିଲା । ଚାଷୀ କଅଣ କରିବ — ତାକୁ ବୁଦ୍ଧି ଦିଶିଲା ନାହିଁ । ଚାହୁଁ ଚାହୁଁ ତା ଦେହରେ ସାପର ବିଷ ଚରିଗଲା । ସେ ମଲାବେଳକୁ କହିଲା, ''ଏ ଦୁଷ୍ଟ ସାପ ଶୀତରେ ପଡ଼ି ମରିଥାନ୍ତା । ମୁଁ ତାର ଜୀବନ ରଖିବାରୁ ସିନା ନିଜେ ପ୍ରାଣ ହରାଇଲି । ମୋ କର୍ମର ଫଳ ଏବେ ପାଇଲି ।''

''ଦୁଷ୍ଟ ଜୀବର ମଙ୍ଗଳ, ଦିଅଇ ବିପରୀତ ଫଳ ।''

## ଛେଳି ଓ ବାଣୁଆ

ଗୋଟିଏ ବଣୁଆ ଛେଳି ବଣ ଭିତରେ ବୁଲି ଡାଳପତ୍ର ଖାଉଥିଲା । ଜଣେ ଶିକାରୀ ତାକୁ ଦେଖିପାରି ମାରିବା ପାଇଁ ତା' ପଛେ ପଛେ ଗୋଡ଼ାଇଲା । କିଛିଦୂର ଗୋଡ଼ାଇବା ପରେ ଶିକାରୀ ଛେଳିର ଖୁବ୍ ନିକଟରେ ପହଞ୍ଚିଗଲା । ଛେଳି ଭାବିଲା ଏଥର ଶିକାରୀ ହାତରେ ନିଶ୍ଚୟ ପ୍ରାଣ ଯିବ । ସେ ଆକୁଳ ହୋଇ ଚାରିଆଡ଼କୁ ଚାହିଁ ଗୋଟିଏ ଲଟାବୁଦା ଦେଖିଲା । ଛେଳି ଜୀବନବିକଳରେ ସେହି ଲଟା ଭିତରେ ପଶିଗଲା । ଶିକାରୀ ତାକୁ ଦେଖିପାରିଲା ନାହିଁ । ସେ ଚାରିଆଡ଼କୁ ଚାହିଁଲା, କିନ୍ତୁ କୌଣସିଠାରେ ଛେଳିକୁ ଦେଖିଲା

ନାହିଁ। ତେଣୁ ହତାଶ ହୋଇ ଫେରିଯିବାକୁ ବସିଲା।

ଛେଳି ଏଥର ଭାବିନେଲା ଯେ ସେ ଶିକାରୀ ହାତରୁ ଖସିଯାଇଛି– ତା'ର ଆଉ ଭୟ ନାହିଁ। ସେ ଖୁସି ମନରେ ଲଟାବୁଦାରୁ ପତ୍ରଗୁଡ଼ିକ ଖାଇବାକୁ ଲାଗିଲା। ପତ୍ରଗୁଡ଼ିକ କମିଯିବାରୁ ଲଟା ଭିତର ମେଲା ହୋଇଗଲା। ତା' ଛଡ଼ା ଖସ୍ ଖସ୍ ଶବ୍ଦ ଶୁଣି ଶିକାରୀ ଲଟାବୁଦା ଆଡ଼କୁ ଚାହିଁ ଛେଳିକୁ ଦେଖିପାରିଲା ଓ ଦୌଡ଼ିଯାଇ ତାକୁ ମାରିପକାଇଲା। ମଲାବେଳକୁ ଛେଳି କହିଲା,



"ମୁଁ କେଡ଼େ ବୋକାମି ନକଲି! ଲଟାର ପତ୍ରଗୁଡ଼ିକ ମୋତେ ଶିକାରୀର ନଜରରୁ ଲୁଚାଇ ରଖିଥିଲା। ସେଗୁଡ଼ିକ ଖାଇଦେବାରୁ ସିନା ଶିକାରୀ ମୋତେ ଦେଖିଲା! ଯେଉଁ ପତ୍ରଗୁଡ଼ିକ ମୋର ଜୀବନ ରଖିଥିଲା, ମୁଁ ସେଗୁଡ଼ିକ ଖାଇ ନଷ୍ଟ କଲି। ମୋ କୃତଘ୍ନତାର ଫଳ ପାଇଲି।"

କୃତଘ୍ନତା ପାପ ମହା ଭୀଷଣ, ସେ ପାପୁଁ ମରଣ ହୁଅଇଜାଣ।

# ଦୁଇଜଣଙ୍କ କଳିରେ ତୃତୀୟର ଲାଭ

ବଣ ଭିତରେ ଗୋଟିଏ ସନ୍ତସନ୍ତିଆ ଜଳାଭୂମି । କେଉଁଠାରେ ପାଣି କାଦୁଅ, କେଉଁଠାରେ ଶରବଣ ବା ବୁଦା । ସେଠାରେ ଗୋଟିଏ ବେଙ୍ଗ ଓ ଗୋଟିଏ ମୂଷା ରହୁଥିଲେ । ବେଙ୍ଗଟି ଥିଲା ବଳୁଆ ଓ ବୁଦ୍ଧିଆ । ମୂଷା ଥିଲା ଚଞ୍ଚଳ ଓ କୌଶଳୀ । ଦୁହେଁ ନିଜ ନିଜକୁ ବଡ଼ ମନେକରୁଥାନ୍ତି ଓ ସେ ଜଳାଭୂମିର ମାଲିକ ବୋଲି ଦାବୀ କରୁଥାନ୍ତି । ଦୁହିଁଙ୍କ ଭିତରେ ଶତ୍ରୁତା ରହିଥାଏ ଓ ଦେଖାହେଲେ ନିଜ ନିଜ ଭିତରେ କଳିକରୁଥାନ୍ତି । ମୂଷା ମନେକରୁଥାଏ, ସେ ହେଉଛି ଏ ଜାଗାର ରାଜା – ବେଙ୍ଗର କିଛି ଅଧିକାର ନାହିଁ । ସେହିପରି ବେଙ୍ଗ ମନେକରୁଥାଏ, ସେ ହେଉଛି ଅସଲ ରାଜା – ମୂଷାର କିଛି ଅଧିକାର ନାହିଁ ।

କ୍ରମେ ଦୁହିଁଙ୍କର ବିବାଦ ବହୁତ ବଢ଼ିଗଲା । ଶେଷରେ ନିଜନିଜର ଦାବୀ ହାସଲ କରିବାକୁ ଦୁହେଁଯାକ ଲଢ଼େଇକୁ ବାହାରିପଡ଼ିଲେ । ଠିକ୍ ହେଲା – ଯିଏ ଲଢ଼େଇରେ ଜିଣିବ ସେଇ ହେବ ସେଠାର ରାଜା ।

ଦୁହେଁଯାକ ଶରବଣକୁ ଯାଇ ଗୋଟିଏ ଲେଖାଏଁ ଶର ଆଣିଲେ । ଏହାର ଗୋଟିଏ ମୁଣ୍ଡକୁ ଗୋଜିଆ କରି ଯୁଦ୍ଧ ପାଇଁ ତିଆର ହେଲେ । ଦୁହେଁ ପରସ୍ପରକୁ ଚାହିଁ ଶର ମାରିବାକୁ ଛକି ରହିଲେ । କିପରି କେତେବେଳେ ଶର ମାରିବେ ଉପାୟ ପାଞ୍ଚୁଥାନ୍ତି ।

ବେଙ୍ଗ ଓ ମୂଷା ଲଢ଼େଇ ପାଇଁ ତିଆର ହେଉଥିବାବେଳେ ଗୋଟିଏ ଚିଲ ଉପରେ ଉଡ଼ି ଉଡ଼ି ସେ ଦୁହିଁଙ୍କୁ ଦେଖୁଥିଲା । କିନ୍ତୁ ବେଙ୍ଗ ଓ ମୂଷା କିପରି ଲଢ଼େଇ କରିବେ ତାହା ଭାବୁଥିବାରୁ

ସେମାନେ ଉପରକୁ ଆଦୌ ଚାହିଁନଥିଲେ । ବେଙ୍ଗ ଓ ମୂଷା ଦୁହେଁ ପରସ୍ପରକୁ ଶର ମାରିବା ପାଇଁ ଲାଗିଆସିଲେ । ସେତିକିବେଳେ ଚିଲ ତଳକୁ ଓହ୍ଲାଇ ଆସିଲା ଏବଂ ମୂଷା ଓ ବେଙ୍ଗକୁ ଧରି



ଉଡ଼ିଗଲା । ଗଛ ଡାଳରେ ବସି ଦୁହିଁଙ୍କୁ ମାରି ଖାଇଲା । ସେ ଜଙ୍ଗଲଭୂମିର ରାଜା ବୋଲାଇବାକୁ ଆଉ କେହି ରହିଲେ ନାହିଁ ।

"ଦୁଇ ଜଣର କଳି ହେଲେ
ତୃତୀୟ ଲାଭ କରେ ହେଙ୍କେ ।"

# କାଉ କଅଣ ମୟୂର ହେବ ?

ଗୋଟିଏ ଡାମରା କାଉ ନିଜ ଦେହକୁ ଚାହିଁ ଦିନେ ଭାବିଲା "ମୋର ଦେହଟାଯାକ କଳା। ଅନ୍ୟ ପକ୍ଷୀମାନଙ୍କର ପର ଭିନ୍ନ ଭିନ୍ନ ରଙ୍ଗର। କାହାରି କାହାରି ପର ନାନା ରଙ୍ଗରେ ଚିତ୍ରିତ। ତେଣୁ ସେମାନେ କେଡ଼େ ସୁନ୍ଦର ଦିଶୁଚନ୍ତି। ସେଭଳି ସୁନ୍ଦର ଚଢ଼େଇଙ୍କ ସାଥିରେ ସାଙ୍ଗ ହେବାକୁ କିମ୍ୱା ଖେଳ ବୁଲ କରିବାକୁ ମୋତେ ଲାଜଲାଗୁଛି। ସେମାନେ ମଧ୍ୟ ମୋତେ ପସନ୍ଦ କରୁନାହାନ୍ତି। ଅନ୍ୟ ଡାମରା କୁଆମାନେ ମୋରି ଭଳି କଳା। ସେମାନଙ୍କ ସାଥିରେ ରହିବାରେ କି ଲାଭ ! ମୁଁ କିପରି ସୁନ୍ଦର ଦେଖାଯାନ୍ତି କି ସବୁ ପକ୍ଷୀ ମୋତେ ଆଦର କରନ୍ତେ, ଖାତିର କରନ୍ତେ।"

କାଉଟି ଏହିପରି ଚିନ୍ତା କରି ମନ ଦୁଃଖରେ ଯାଉ ଯାଉ ଗୋଟିଏ ଗଛମୂଳେ ଗୁଡ଼ିଏ ମୟୂର ପର ପଡ଼ିଥିବା ଦେଖିଲା। ତା' ମୁଣ୍ଡରେ ଗୋଟିଏ ବୁଦ୍ଧି ଖେଳିଗଲା। ସେ ଭାବିଲା, ଏଇ ପରଗୁଡ଼ିକ ନେଇ ମୋ ଦେହରେ ଖଞ୍ଜି ଦେଲେ ମୁଁ ମଧ୍ୟ ମୟୂର ଭଳି ସୁନ୍ଦର ଦିଶିବି। ତାହାହେଲେ ମୟୂରମାନେ ମୋତେ ସେମାନଙ୍କ ସାଥିରେ ମିଶାଇବେ। ଅନ୍ୟ ସୁନ୍ଦର ପକ୍ଷୀମାନେ ମଧ୍ୟ ମୋ ସହିତ ମିଶିବେ।

ଏହା ଭାବି କୁଆ ମୟୂର ପରଗୁଡ଼ିକୁ ନେଇ ନିଜ ଡେଣା ଓ ଲାଞ୍ଜରେ ଖଞ୍ଜିଦେଲା ଏବଂ ଆନନ୍ଦରେ ଡେଇଁ ଡେଇଁ ଯାଇ ମୟୂରମାନଙ୍କ ଦଳରେ ପଶିଲା। କିନ୍ତୁ ମୟୂରମାନେ ତାକୁ ଦେଖିଲାକ୍ଷଣି ଥଟ୍ଟା କଲେ ଓ ଥଣ୍ଟରେ ଖୁମ୍ପି ତଡ଼ିଦେଲେ।

କାଉ ବିଚ଼ରା କାନ୍ଦି କାନ୍ଦି ଆପଣା ଜାତିଭାଇଙ୍କ ପାଖକୁ ଫେରି ଆସିଲା । କିନ୍ତୁ ସେମାନେ ତାକୁ ପାଖରେ ନ ପୂରାଇ କହିଲେ, "ତୁ ଆମ ଜାତି ଛାଡ଼ି ମୟୂରଜାତିରେ ମିଶିବାକୁ ଯାଇଥିଲୁ । ପରଠାରୁ ମାଗିଆଣି କେଉଁ ଜାତି ବଡ଼ ହେଲାଣି ? ମୟୂର ହେବାକୁ ଚେଷ୍ଟାକରି ତୁ ଠିକ୍ ଶିକ୍ଷା ପାଇଛୁ । ତୋର ଏଣିକି ଆମ ଦଳରେ ମଧ୍ୟ ଥାନ ନାହିଁ ।"

କାଉ ଏବେ ଆପଣାର ଭୁଲ ବୁଝିପାରିଲା । କିନ୍ତୁ ଆଉ ଉପାୟ ନଥିଲା । ସେ ଏକୁଟିଆ ରହି ଦୁଃଖରେ ଜୀବନ କଟାଇବାକୁ ବାଧ୍ୟ ହେଲା ।

"ବେଶ ନୁହେଁ ବଡ଼ପଣ ଲକ୍ଷଣ,
ସାନ ସାନ, ବଡ଼ ନୁହେଁ କଦାଚ଼ନ ।"

## ଲାଙ୍ଗୁଡ଼ହୀନ କୋକିଶିଆଳି

ଜଣେ ଚାଷୀ ଗୁଡ଼ିଏ କୁକୁଡ଼ା ପାଳିଥିଲା । ସେଗୁଡ଼ିକ ଦିନଯାକ ପଦାରେ ଚରି ବୁଲି ସଞ୍ଜବେଳକୁ ଫେରିଆସନ୍ତି । ଚାଷୀ ସେମାନଙ୍କୁ ଗୋଟିଏ ଚାଳଘରେ ବନ୍ଦକରି ରଖେ, କବାଟରେ ଚାବି ବନ୍ଦକରିଦିଏ ।

ଗୋଟିଏ କୋକିଶିଆଳି ଏ କୁକୁଡ଼ାଗୁଡ଼ିକୁ ଦେଖି ଖାଇବାକୁ ମନକଲା । କୁକୁଡ଼ା ଥିବା ଘର ଚାଳରେ ଗୋଟିଏ କଣା କରି ସେ ପ୍ରତିଦିନ ରାତିରେ ଘର ଭିତରେ ପଶିଲା ଓ ଗୋଟିଏ ଦିଓଟି କୁକୁଡ଼ା ମାରି ଖାଇଲା । ଏହିପରି ତିନି ଚାରିଦିନ ଗଲା । କୋକିଟି ଆଠଟି ଯାଏଁ କୁକୁଡ଼ା ଖାଇଗଲା । ଏହା ଦେଖି ଚାଷୀଟି ଚାଳର କଣାତଳେ ଗୋଟିଏ ଜନ୍ତା ବସାଇଲା ।

ଅନ୍ୟ ଦିନ ପରି କୋକିଶିଆଳି ସେଦିନ ମଧ୍ୟ କଣାବାଟେ ଘର ଭିତରକୁ ପଶିଲା କୁକୁଡ଼ା ଖାଇବାକୁ । କିନ୍ତୁ ଭିତରକୁ ପଶିଲାକ୍ଷଣି ଜନ୍ତାରେ ପଡ଼ିଗଲା । ଭାଗ୍ୟକୁ ତାର ଲାଞ୍ଜଟି କେବଳ ଜନ୍ତାରେ ପଡ଼ିଥିଲା । ସେ ପଳାଇବା ପାଇଁ କେତେ ଟାଣିଭିଡ଼ି ହେଲା । ଅନେକ ବେଳ ଯାଏ ଟାଣିଓଟାରି ହେବାରୁ ଶେଷରେ ତାର ଲାଞ୍ଜଟି ଛିଡ଼ିଗଲା । କୋକିଶିଆଳି ସେଠାରୁ ପ୍ରାଣ ଘେନି ପଳାଇଗଲା ।



ସେ ଭାବିଲା, ଲାଙ୍ଗୁଡ଼ଟା ଛିଡ଼ୁ ପଛକେ ପ୍ରାଣଟା ତ ରହିଗଲା । କିନ୍ତୁ ମୋର ଲାଙ୍ଗୁଡ଼ ନଥିବା ଦେଖି ଜାତିଭାଇମାନେ ମୋତେ ଥଟ୍ଟା କରିବେ । ସେ ଅପମାନ କିପରି ସହିବି ?

ଶେଷରେ ସେ ଏକ ବୁଦ୍ଧି ପାଞ୍ଚି ତାର ଜାତିଭାଇମାନଙ୍କ ପାଖକୁ ଯାଇ କହିଲା, ''ଭାଇମାନେ, ମୁଁ ଆଜି ଆପଣମାନଙ୍କୁ ଏକ ଭଲ ଖବର ଦେବି । ଆମର ଲାଞ୍ଜଗୁଡ଼ାକ ଯେ ଆମକୁ

କେଡ଼େ ଅସୁବିଧାରେ ପକାଏ, ତାହା ଆପଣମାନଙ୍କ ଭିତରୁ ଅନେକେ ଜାଣନ୍ତି ନାହିଁ। ସମସ୍ତେ ଏ କଥା ମାନିବେ ଯେ, ଲାଞ୍ଜଯୋଗୁ ଆମର କିଛି ହେଲେ ଉପକାର ହୁଏନାହିଁ। ଥରେ ଲାଞ୍ଜଟା କାଟିଦେଲେ ଦେଖିବେ କେଡ଼େ ସହଜରେ, କେଡ଼େ ବେଗରେ ଦୌଡ଼ିପାରିବେ। ମୋର ଲାଞ୍ଜଟା କାଟିଦେବା ପରେ ମୁଁ କେତେ ଆନନ୍ଦ ଅନୁଭବ କରୁଛି ସେ କଥା କହିହେବ ନାହିଁ। ଲାଞ୍ଜ ରଖିବା ଗୋଟାଏ ପୁରୁଣାକାଳିଆ କଥା। ତେଣୁ ମୁଁ କହୁଛି– ଆପଣମାନେ ମୋପରି ନିଜନିଜର ଲାଞ୍ଜ କଟାଇ ସୁଖରେ ରହନ୍ତୁ, ଦେହର ଶୋଭା ବଢ଼ାନ୍ତୁ। କିପରି ସହଜରେ ଲାଞ୍ଜ କଟାଯାଇପାରିବ ମୁଁ ତାର ଉପାୟ ବତାଇଦେବି।''

ଅନ୍ୟ କୋକିଶିଆଳିମାନେ ଚୁପ୍ ହୋଇ ବସି ଏ ଉପଦେଶ ଶୁଣୁଥିଲେ। କେହି କେହି ଭାବୁଥିଲେ, ଲାଞ୍ଜ କଟାଗଲେ ଆମେ କଣ ସତରେ ଅଧିକ ବେଗରେ ଦୌଡ଼ିପାରିବା! ବେଶି ସୁନ୍ଦର ଦିଶିବା! ଆଉ କେତେକ ଭାବୁଥିଲେ– ଆଜିଯାଏଁ ତ ଲାଞ୍ଜ ଥିଲା, କେହି କିଛି ଅସୁବିଧା ହେଉଛି ବୋଲି କହୁ ନ ଥିଲେ। ଆଜି ଏ ସମସ୍ତଙ୍କୁ ଲାଞ୍ଜ କାଟିବାପାଇଁ କହୁଛି କାହିଁକି ?

ଗୋଟିଏ ବୁଢ଼ା କୋକିଶିଆଳି ଥିଲା। ସେ ପ୍ରକୃତ ଘଟଣା ଅନୁମାନ କରି କହିଲା, ''ଭାଇ, ତୁମେ ପ୍ରାଣ ଘେନି ଜନ୍ତାରୁ ଖସିଆସିବା ପାଇଁ ଲାଞ୍ଜଟା କଟାଇଦେଲ। ଆମେ ଯଦି ତୁମଭଳି ଅବସ୍ଥାରେ ପଡ଼ିବୁ, ତେବେ ଆମେ ମଧ୍ୟ ଆମର ଲାଞ୍ଜ କଟାଇ ଦେବୁ। କିନ୍ତୁ ଏବେ ଲାଞ୍ଜ ପାଇଁ ଆମର କିଛି ଅସୁବିଧା ହେଉନାହିଁ, ତେଣୁ ଲାଞ୍ଜ କାଟିଦେବା ଦରକାର ନାହିଁ।''

''ନ ବୁଝି ପର ଉପଦେଶ, ଶୁଣିଲେ ବିପଦ ଅବଶ୍ୟ।''

# ଦୁଷ୍ଟକୁ ଆଶ୍ରୟ ଦିଅନାହିଁ

ଦିନେ ଗୋଟିଏ ଝିଙ୍କ ବଣ ଭିତରେ ବୁଲି ଆହାର ଖୋଜୁଥିଲା । ଏହି ସମୟରେ ପ୍ରବଳ ଝଡ଼ ବର୍ଷା ଆସିଲା । ପବନରେ କେତେ ଗଛ ଭାଙ୍ଗିପଡ଼ିଲା । କେଉଁଠି ଆଶ୍ରା ନେବ ବୋଲି ଝିଙ୍କଟି ପ୍ରାଣ ଭୟରେ ଏଣେତେଣେ ଧାଇଁଲା । କିଛି ଦୂରରେ ପଥରସନ୍ଧିରେ ଗୋଟିଏ କୋରଡ଼ ଦେଖି ସେ ତାହା ଭିତରେ ରହିଯିବାକୁ ଠିକ୍ କଲା ।

ସେ କୋରଡ଼ ମୁହଁରେ ପହଞ୍ଚି ଦେଖେ ତ ସେଥିରେ ଗୋଟିଏ ସାପ ତାର ଛୁଆପିଲା ଧରି ରହିଛି । ଝିଙ୍କ ବିନୟ ହୋଇ କହିଲା, "ସାପ ଭାଇ, ଏ ଝଡ଼ରେ ପଦାରେ ରହିହେଉନାହିଁ। ମୋତେ ତୁମ ଘରେ ଟିକିଏ ଆଶ୍ରା ଦିଅ ।"

ସାପ କହିଲା, "ହଉ, ତୁମେ ବିପଦରେ ତ ପଡ଼ିଛ— ଆମ ସାଥିରେ ରହିଥାଅ । ଝଡ଼ ଛାଡ଼ିଗଲେ ତୁମ ନିଜ ଘରକୁ ଚାଲିଯିବ ।"

ଝିଙ୍କ ସାପର କୋରଡ଼ ଭିତରେ ପଶିଲା । ତାର ଗୋଞ୍ଜିଆ ପରଗୁଡ଼ାକ ସାପମାନଙ୍କ ଦେହରେ ବାଜି କଷ୍ଟଦେଉଥାଏ । କେତେକଙ୍କ ଦେହରେ ଫୁଟି ରକ୍ତ ବୋହିଲା । ତଥାପି ସେମାନେ ଝିଙ୍କକୁ ତଡ଼ିଦେଲେନାହିଁ। ଝିଙ୍କକୁ ରହିବାକୁ ଜାଗା ଛାଡ଼ିଦେଲେ ।

କିନ୍ତୁ ଝିଙ୍କର ସେମାନଙ୍କ ଅସୁବିଧା ପ୍ରତି ଆଦୌ ବିଚାର ନ ଥାଏ । ସେ ବହୁତ ଜାଗା ମାଡ଼ିବସିଲା । ତାର ପରରେ କାଟିହୋଇ ସାପମାନଙ୍କ ଦେହରେ ନାନା ଜାଗା ଖଣ୍ଡିଆହେଲା । ଶେଷରେ ସେମାନେ ଏ କଷ୍ଟ ଆଉ ସହିପାରିଲେ ନାହିଁ। ଏଣେ

ଝଡ଼ ମଧ କମିଆସିଲା । ତହୁଁ ସାପ କହିଲା, ‘‘ଝଡ଼ ତ କମିଗଲାଣି । ଏ ଛୋଟ ଘରଟିରେ ସମସ୍ତଙ୍କ ପାଇଁ ଜାଗା ହେଉନାହିଁ । ଏବେ ତୁମେ ତୁମ ନିଜ ଘରକୁ ଚାଲିଯାଅ ।’’

ଝିଙ୍କ କହିଲା, ‘‘ମୁଁ ଯିବି କୁଆଡ଼େ ? ଏ ଘରଟି ମୋର । ତୁମର ଅସୁବିଧା ହେଉଥିଲେ ତୁମେ ବାହାରିଯାଅ ।’’ ସାପ କହିଲା, ‘‘ଏ ପରା ମୋର ଘର – ମୁଁ ଯିବି କୁଆଡ଼େ ?’’

ଏଥର ଝିଙ୍କ ତାର ପରଗୁଡ଼ିକ ଭଲକରି ମେଲାଇ ଦେଇ କହିଲା, ‘‘କେବେ ଏହା ତୁମର ଘର ଥିଲା – ଏବେ ମୋର । ମୁଁ ବେଶ୍ ସୁଖରେ ଅଛି । ତୁମକୁ କଷ୍ଟ ହେଉଛି ତ ବାହାରିଯାଅ ।’’

ସାପ ତାର ପିଲାମାନଙ୍କୁ ନେଇ ସେ କୋରଡ଼ ଛାଡ଼ି ଚାଲି ଯାଉଯାଉ କହିଲା, ‘‘ଦୁଷ୍ଟକୁ ଦୟା ଦେଖାଇବାର ଫଳ ଏବେ ପାଇଲି ।’’

‘‘ଦୁଷ୍ଟକୁ ଦିଏ ଯେ ଆଶ୍ରୟ,
ବିପଦେ ପଡ଼େ ସେ ନିଶ୍ଚୟ ।’’

□ □ □